ଜଳଜନ୍ତୁ ସଂରଜ — ଦ୍ୱିତୀୟ

# ଜଳହସ୍ତୀ

ଲେଖକ

ଶ୍ରୀ ଉଦୟନାଥ ଷଡ଼ଙ୍ଗୀ

ଓଡ଼ିଆ ଷ୍ଟୁଡେଣ୍ଟସ୍ ଷ୍ଟୋର



—୧—

ଜଳହସ୍ତୀକୁ ଇଂରେଜୀରେ ହିପୋ ବା ହିପୋପଟାମସ୍ (Hippopotamus) କୁହାଯାଏ । ଏମାନେ ନଦୀର ମଧୁର ପାଣିରେ ରହନ୍ତି । ମାତ୍ର ସମୁଦ୍ରରେ ଏକ ପ୍ରକାର ହିଂସ୍ର ଜନ୍ତୁ ଅଛନ୍ତି, ସେମାନଙ୍କର ଇଂରେଜୀ ନାମ ୱାଲରସ୍ (walrus) । ହାତୀଦାନ୍ତ ପରି ସେମାନଙ୍କ ଦାନ୍ତ ଦେଖା ଯାଉଥିବାରୁ ସେମାନଙ୍କୁ ସମୁଦ୍ରର ହାତୀ କୁହାଯାଇଥାଏ । ଜଳହସ୍ତୀ ଓ ସମୁଦ୍ରର ହାତୀ ମଧ୍ୟରେ ବହୁତ ପ୍ରଭେଦ । ( ଏହି ସମୁଦ୍ରର ହାତୀ (walrus) ବିଷୟ 'ସମୁଦ୍ରର ରାକ୍ଷସ' ପୁସ୍ତକରୁ ଜାଣିପାରିବ ) ।

ଆଫ୍ରିକା ମହାଦେଶର ନୀଳନଦୀରେ ଏହି ଜଳହସ୍ତୀ ବହୁ ସଂଖ୍ୟାରେ ଦେଖାଯାନ୍ତି । ଏମାନଙ୍କୁ ଜଳଚର ପ୍ରାଣୀ କୁହାଗଲେ ମଧ୍ୟ ଏମାନେ ମାଛ, କଙ୍କଡ଼ା, ଡିମି ପ୍ରଭୃତି ଜଳଜନ୍ତୁଙ୍କ ପରି ସବୁ ସମୟ ପାଣି ଭିତରେ କଟାନ୍ତି ନାହିଁ । ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ସାଧାରଣତଃ

ପାଣି ଭିତରେ ରହନ୍ତି; ରାତିହେଲେ ଶୁଖିଲାକୁ ଆସି ମାଟି ଉପରେ ବୁଲନ୍ତି ଓ ଖାଦ୍ୟଦ୍ରବ୍ୟ ଅନ୍ୱେଷଣ କରନ୍ତି । ତେଣୁ ଏମାନଙ୍କୁ ଜଳ ଓ ସ୍ଥଳ ଉଭୟଚର ପ୍ରାଣୀ କୁହାଯିବା ସଙ୍ଗତ ।

ଜଳହସ୍ତୀ ଦିନସାରା ପାଣିଭିତରେ ରହିବା ଉଦ୍ଦେଶ୍ୟ, ପାଣିକୁ ଅତି ନିରାପଦ ସ୍ଥାନ ମନେ କରେ । ପାଣିରେ ଯେତେ ଶୀଘ୍ର ସେ ପହଁରିପାରେ, ଶୁଖିଲାରେ ସେତେ ଶୀଘ୍ର ଦଉଡ଼ି ପା'ଇପାରେ ନାହିଁ । କୌଣସି ଶତ୍ରୁ ଆକ୍ରମଣ କରିବାକୁ ଆସିଲା ବୋଲି ଜାଣି ପାରିଲେ, ସେ ପାଣିରେ ଅତିବେଗରେ ପହଁରି ଦୂରକୁ ଚାଲିଯାଏ, ନହେଲେ ପାଣି ଭିତରେ ବୁଡ଼ିଯାଇ ନିଜକୁ ନିରାପଦରେ ରଖେ । ଶୁଖିଲାରେ ସେ ଏଭଳି ନିରାପଦରେ ରହିପାରେ ନାହିଁ । କାରଣ, ତାର ଗୋଡ଼ଚାରୋଟି ଦେହ ତୁଳନାରେ ସାନ; ଯୋରରେ ଦଉଡ଼ିବା ତା ପକ୍ଷରେ ସମ୍ଭବ ନୁହେ । ପୁଣି ତାର ପ୍ରକାଣ୍ଡ ଶରୀରକୁ ଶତ୍ରୁ ଆଖିରୁ ଲୁଚାଇ ରଖିବାକୁ ସ୍ଥଳଭାଗରେ ସୁବିଧା ନ ଥାଏ ।

ଜୀବ-ବିଜ୍ଞାନୀମାନେ କହନ୍ତି, ଜଳହସ୍ତୀ ଘୁଷୁରିଜାତୀୟ ପ୍ରାଣୀ । ଏହାର ଆକାର ପ୍ରକାର କେତେକାଂଶରେ ଘୁଷୁରିର ଆକାର ପ୍ରକାର ସହିତ ଖାପ ଖାଏ । ପୁଣି ଘୁଷୁରିଠାରୁ ଏହାର ପ୍ରଭେଦ ବି ଅନେକ ।

ଘୁଷୁରି ପରି ଏହାର ଲାଞ୍ଜ ଛୋଟ । ମୁଣ୍ଡଟା ଚଉଡ଼ା; କାନ ଓ ଆଖିଦୁଇଟି ଦେହର ଆକାର ତୁଳନାରେ ଅତି କ୍ଷୁଦ୍ର । ଗୋଡ଼ ଚାରିଟା ମଧ୍ୟ ସାନ ଓ ମୋଟା ।

ମୁହଁଟା ଘୁଷୁରି ମୁହଁ ପରି ହୋଇଥିଲେ ମଧ୍ୟ ଥୋମଣିଟା ଘୁଷୁରି ଥୋମଣି ପରି ନୁହେ । ତାହା ବଳଦ ଥୋମଣି ପରି; ମାତ୍ର ଅତି ଚଉଡ଼ା ।

ହାତୀ ସହିତ ଏହାର କେତେକ ପରିମାଣରେ ସାମଞ୍ଜସ୍ୟ ଥିବାର ଦେଖାଯାଏ; ତେଣୁ ଏହାର ନାମ 'ଜଳହସ୍ତୀ'।

ହାତୀ ପରି ଏହାର ବିରାଟ ଶରୀର। ସ୍ଥଳଭାଗରେ ହାତୀ ସବୁଠାରୁ ବଡ଼ ଜୀବ। ତା ତଳକୁ ଏହି ଜଳହସ୍ତୀ। ପ୍ରକାଣ୍ଡ ଶରୀରକୁ ନେଇ ଝୁଲିଝୁଲି ଚାଲିଗଲା ବେଳେ ଦୂରରୁ ହାତୀ ଯାଉ-ଥିଲା ପରି ଜଣାଯିବ।

—୨—

ଜଳହସ୍ତୀର ଦେହ ସାଧାରଣତଃ ସାଢ଼େ ୩ମି. ପର୍ଯ୍ୟନ୍ତ ଲମ୍ବ ଓ ଦେଢ଼ ମି. ବା ୨ ମି. ପର୍ଯ୍ୟନ୍ତ ଉଚ୍ଚ ହୁଏ। ଏପର୍ଯ୍ୟନ୍ତ



( ବିରାଟ ଜଳହସ୍ତୀ )

ଦେଖାଯାଇଥିବା ସବୁଠାରୁ ବଡ଼ ଜଳହସ୍ତୀଟି ପ୍ରାୟ ୫ ମି. ଲମ୍ବ ଓ ୨୫ ମି. ଉଚ୍ଚ ଥିଲା। ଗୋଟିଏ ଗୋଟିଏ ବୟସ୍କ ଜଳହସ୍ତୀ

ବା ହ୍ଵପୋର ଓଜନ ପାଞ୍ଚ ଟନରୁ କମ ହୁଏ ନାହିଁ । (ଏକଟନ ପ୍ରାୟ ବାଲେଶ୍ଵର ୨୭ ମହଣ ଓଜନ ସଙ୍ଗେ ସମାନ) । ଏହା ଏତେ ମୋଟା ଯେ, ପେଟର ଗୋଲେଇ ପ୍ରାୟ ୮ ମି. ପର୍ଯ୍ୟନ୍ତ ହେବ ।

ଏହି ଜନ୍ତୁର ମୁହଁ ପାଖ ଅପେକ୍ଷା ପଛ ପାଖ ଟିକିଏ ଉଚ୍ଚା । ଦେହରେ ଯଥେଷ୍ଟ ମାଂସ; ତେଣୁ ଚମ ଉପରଟା କୁଞ୍ଚିଲା ପରି ଦେଖାଯାଏ । ଚମଡ଼ାଟି ପୂରୁ ହୋଇଥାଏ । ଦେହର ବର୍ଣ୍ଣ ଧୂସର, ମାଟିଆ ବା ପାଉଁଶିଆ ।

ଗୋଡ଼ ଚାରୋଟି ସାନ ଓ ମୋଟା । ସେଥିରେ ହାତୀ ପାଦୁଲ ପରି ପାଦୁଲ । ସେ ପାଦୁଲରେ ଚାରିଗୋଟି ଲେଖାଏଁ ନଖ ଥାଏ ।

ଦେହ ତୁଳନାରେ ମୁଣ୍ଡଟା ଟିକିଏ ସାନ । କାନ ଦୁଇଟି ଅତି ସାନ । ଗୋଲ ଆଖି ଦୁଇଟି ଉପରକୁ ଉଠି ରହିଥାଏ । ଆଖି ତଳକୁ ଥୋମଣିଟା ଟିକିଏ ସରୁ ଦେଖା ଯାଏ । ତାହା ତଳକୁ ଖୁବ୍ ଚଉଡ଼ା ଓ ମୋଟା ।

ସମସ୍ତ ଅଙ୍ଗପ୍ରତ୍ୟଙ୍ଗ ମଧ୍ୟରେ ସବୁଠାରୁ ଅଦ୍ଭୁତ ହେଉଛି ଏହାର ବଡ଼ଟ ପାଟି । ପାଟି ତ ନୁହେ, ସତେ ଯେପରି ଗୋଟାଏ ପର୍ବତ ଗୁମ୍ଫା । ଦେହର ରଙ୍ଗ ଧୂସର ମାଟିଆ ହେଲେ ମଧ୍ୟ ଏଇ ପାଟି ଭିତରର ବର୍ଣ୍ଣ ନାଲି । ସେ ଯେତେବେଳେ ସେହି ଅତି ବଡ଼ ପାଟିକୁ ମେଲା କରିଦିଏ, ସେତେବେଳେ ତାହା ଭୟଙ୍କର ଦିଶେ ।

ପାଟି ଭିତରେ ତଳ ଉପର ହୋଇ ଦୁଇ ଧାଡ଼ି ଦାନ୍ତ । ଦାନ୍ତର ସଂଖ୍ୟା ଚାଳିଶ । ଏଗୁଡ଼ିକ ଅତି ଟାଣ ଓ ମୁନିଆଁ । ତଳ ମାଢ଼ିର ଦୁଇ ପାଖରେ ଦୁଇଟା ଲମ୍ବ ଦାନ୍ତ ବଙ୍କାହୋଇ ଥୋମଣି ଉପରକୁ ଉଠିଆସିଥାଏ । ଏହା ଠିକ୍ ହାତୀ ଦାନ୍ତ ପରି; ମାତ୍ର

ସେତେ ବଡ଼ ନୁହେ । ପଚାଶରୁ ଅଶୀ ସେ.ମି. ମଧ୍ୟରେ ଏହା ଲମ୍ବ ହୋଇ ବଢ଼ିଥାଏ ।



( ପାଟି ନୁହେଁ ପର୍ବତ ଗୁମ୍ଫା )

ଏହାର ପାଟି ଓ ଦାନ୍ତ ଏହାର ପ୍ରଧାନ ଅସ୍ତ୍ର । ଦାନ୍ତ ଅତି ଟାଣ ଓ ମୁନିଆ । ଏହାର ଦାନ୍ତ ସାହାଯ୍ୟରେ ସେ ବଡ଼ ବଡ଼ ଗଛ, ଗଛର ଡାଳ ପ୍ରଭୃତି କାମୁଡ଼ି ଭାଙ୍ଗିପକାଏ । ନଈରେ ଯାଉଥିବା ଡଙ୍ଗା ବା ନାଆ ପ୍ରଭୃତି ଏହାର ଗୋଟାଏ କାମୁଡ଼ାରେ ଅକ୍ଲେଶରେ

ଭାଙ୍ଗି ଚୂନା ହୋଇଯାଏ । ମୋଟା ଲୁହା ପାତଦିଆ ଜାହାଜକୁ ମଧ୍ୟ ସେ କାମୁଡ଼ି କଣା କରିଦିଏ ।

ଜଳହସ୍ତୀର ଫୁସ୍‌ଫୁସ୍ ଏଭଳି ଭାବରେ ତିଆରି ଯେ, ତାହା ଜଳଚର ପ୍ରାଣୀ ହେଲେ ମଧ୍ୟ ପାଣି ଭିତରେ ବୁଡ଼ି ବେଶି ସମୟ ରହିପାରିବ ନାହିଁ । ଖୁବ୍ ଅଧିକ ହେଲେ ଦଶ ମିନଟ୍ ପର୍ଯ୍ୟନ୍ତ ପାଣି ଭିତରେ ରହିପାରେ । ପ୍ରତି ପାଞ୍ଚ ମିନଟ୍ ବା ଦଶ ମିନଟ୍‌ରେ ସେ ପାଣି ଉପରକୁ ଉଠିଆସେ ଓ ନିଃଶ୍ୱାସ ନିଏ । ପାଣି ଭିତରେ ବୁଡ଼ିଲାବେଳେ ବଡ଼ତ ଭଳି ଏକାବେଳକେ ତଳସ୍ତରକୁ ଚାଲିଯାଏ ଓ ସେଠାରେ ଯେଉଁ ଦଳ, ଘାସ ଓ ଗଛଲତା ଜନ୍ମିଥାଏ, ତାହା ଖାଏ । ତା ପରେ ପରେ ଉପରକୁ ଭାସିଉଠେ । ପାଣିରେ ଥିଲା-ବେଳେ ଅନବରତ ଏହିପରି ତଳ ଉପର ହେଉଥାଏ ।



ହିପୋ ମାଂସାଶୀ ପ୍ରାଣୀ ନୁହେ । ଆମ ଦେଶର ପ୍ରାଚୀନ କାଳର ମୁନି ଋଷିଙ୍କ ଭଳି ସେ କେବଳ ବନର ଫଳ ମୂଳ ଖାଇ ବଞ୍ଚେ । ଗଛର ଡାଳ, ପତ୍ର, ଘାସ, ବିଲରେ ହୋଇଥିବା ଧାନ, ଗହମ ପ୍ରଭୃତି ଫସଲ ଏହାର ପ୍ରଧାନ ଖାଦ୍ୟ । ଏହି ଖାଦ୍ୟ ଜିନିଷ ଖୋଜିବା ଲାଗି ସେ ରାତିରେ ନଈରୁ ଉଠି ଶୁଖିଲାକୁ ଆସେ ଓ ବାଡ଼ିବଗିଚ୍ଚା, ଫସଲକିଆରି ଉଜାଡ଼ି ପକାଏ । କିଆରିରୁ ଫସଲ ଯାହା ତ ଖାଇବାର ଖାଏ; କିନ୍ତୁ ତାର ଶହେ ଗୁଣ ପାଦରେ ଦଳି ଧ୍ୱସ୍ତବିଧ୍ୱସ୍ତ କରିପକାଏ ।

ଜଳହସ୍ତୀ ବହୁତ ବେଶି ଖାଏ । ମହଣ ମହଣ ଓଜନର ଖାଦ୍ୟ ସେ ଏକସମୟରେ ଖାଇ ଦେଇପାରେ । ସେ ଦୃଷ୍ଟିରୁ ଦେଖିଲେ, ତା ପେଟ ତ ପେଟ ନୁହେ, ଗୋଟାଏ ଓବର ପରି ।

ମହାଭାରତରେ ବର୍ଣ୍ଣିତ ଭୀମ ବା ବକ ରାକ୍ଷସ ପରି ଏହି ଜନ୍ତୁ ଅତି ପେଟୁ । ରାତିରେ ଖାଦ୍ୟ ଖୋଜିଖୋଜି ଏହା ବହୁତ ଦୂରକୁ ଚାଲିଯାଏ । କାରଣ ଏହାର ଓଦର ଭଳି ପେଟକୁ ପୂରାଇବା ଲାଗି ଯେତେ ଖାଦ୍ୟଦ୍ରବ୍ୟ ଦରକାର, ତାହା ପାଖଆଖରେ ମିଳିବା ସମ୍ଭବ ହୁଏ ନାହିଁ ।

ଡାଳ, ପତ୍ର, ଘାସ, ଫସଲ ପ୍ରଭୃତି ସିନା ତାର ଖାଦ୍ୟ; ମାତ୍ର ତା ପାଟିକୁ ଯାହା ଯାଏ, ସେ ତା ଗିଳି ପକାଏ । ଖାଇବା ବିଷୟରେ ତାର କିଛି ହେଲେ ବାଛ ବିଚାର ନ ଥାଏ । ଚିଡ଼ିଆ-ଖାନାରେ ଥିବା ଜଳହସ୍ତୀକୁ ଦେଖିବାକୁ ଯାଇ କେହି କେହି କୌତୁକରେ ଛୋଟ ଛୋଟ ହାଣ୍ଡି ମାଠିଆ, ମୁଣ୍ଡର ଟୋପି, ଜାମା, ଲୁଗା ପ୍ରଭୃତି ଏପରିକି ଢେଲା ମାଟି, ଛୋଟ ପଥର ଖଣ୍ଡ ତା ପାଟିକୁ ପକାଇଥାନ୍ତି । ସେହି ବଡ଼ ପାଟି ଭିତରେ ପଡ଼ିବା ସଙ୍ଗେ ସଙ୍ଗେ ସେ ତାକୁ ଗିଳି ପକାଏ । ଅବଶ୍ୟ ପେଟ ଭିତରେ ଯେ ତାହା ହଜମ ହୋଇଥିବ, ତାହା ନୁହେ । ତେଣୁ ସେ ବେମାରରେ ପଡ଼େ ଓ ଚିଡ଼ିଆଖାନା ପରିଚାଳକଙ୍କୁ ହରକତରେ ପକାଏ । କଅଣ ଖାଦ୍ୟ, କଅଣ ଅଖାଦ୍ୟ—ଏ ବାଛବିଚାର ତାର ନ ଥାଏ । ଯାହା ପାଟି ଭିତରକୁ ଗଲା, ସେ ତାହା ପେଟ ଭିତରକୁ ପଠାଇ ଦିଏ ।

ଜଳହସ୍ତୀର ଉପଦ୍ରବରେ ନାଇଲନଦୀଠାରୁ ପ୍ରାୟ ୧୨,୧୩ କିଲୋ-ମିଟର ଦୂର ଅଞ୍ଚଳରେ ଥିବା ଚାଷୀମାନେ ବ୍ୟତିବ୍ୟସ୍ତ ହୋଇଉଠନ୍ତି । ସେ ଯେତେ ସାବଧାନ ହେଲେ ମଧ୍ୟ ସେମାନଙ୍କ ହାତରୁ ଫସଲକୁ ରକ୍ଷା କରିପାରନ୍ତି ନାହିଁ । ଦଳ ଦଳ ଜଳହସ୍ତୀ ରାତିକ ଭିତରେ ମାଇଲ ମାଇଲ ଧରି ଫସଲକିଆରୀ ଉଜାଡ଼ି ପକାନ୍ତି । ଯାହା ଖାଇବାର ତ ଖାଆନ୍ତି, ବାକି ଯାହା ରହେ ତାକୁ ଗୋଡ଼ରେ ଦଳି ଚକଟି ନଷ୍ଟ କରିପକାନ୍ତି ।

ବଣ ଭିତରକୁ ଯାଇ ଗଛ ଡାଳପତ୍ର ଖାଇବା ଅପେକ୍ଷା ସମତଳ ଅଞ୍ଚଳର କୃଷି ଜମିରୁ ଖାଦ୍ୟ ଖାଇବାକୁ ଏମାନେ ବେଶି ପସନ୍ଦ କରନ୍ତି । ବଣକୁ ଗଲେ ନାନା ବିପଦ । ବନ୍ୟ ଶତ୍ରୁ ବାଘ, ସିଂହ ତ ବାଟ ଚାହିଁ ବସିଥିବେ । ପୁଣି ଗଛ ଲତା ଛନ୍ଦାଛନ୍ଦି; ବଣ ଭିତରୁ କାହାରି ପଳାଇଆସିବା ସେତେ ସହଜ ନୁହେ । ଖୋଲାଜାଗା ନଈଆଖରେ ଫସଲ ଖାଉଥିଲା ବେଳେ କେହି ଆକ୍ରମଣ କଲେ ସେଠାରୁ ପାଣିକୁ ସୁବିଧାରେ ପଳାଇ ଆସିହେବ ।

—୪—

ଜଳହସ୍ତୀ ସ୍ତନ୍ୟପାୟୀ ପଶୁ । ଏହା ଛୁଆ ଜନ୍ମ କରେ ଓ ତାକୁ ଦୁଧ ଖୁଆଇ ବଞ୍ଚାଏ । ଏହା ଯୂଥସ୍ତନ୍ୟପାୟୀ ପ୍ରାଣୀ ହୋଇ-ଥିଲେ ମଧ୍ୟ ଘୁଷୁରି ପରି ଥରକେ ଅନେକଗୁଡ଼ିଏ ପିଲା ଜନ୍ମ କରେ ନାହିଁ । ମା ହିପୋ ଥରକେ ଗୋଟିଏ ମାତ୍ର ଛୁଆ ପ୍ରସବ କରେ । ସେତେବେଳେ ସେ ପାଣିରୁ ଶୁଖିଲାକୁ ଉଠିଆସେ ଓ ଘାସବୁଦା, ବଣ ଭିତରେ ଗୋଟିଏ ନିରାପଦ ସ୍ଥାନ ବାଛିନିଏ । ପିଲାଟି ଜନ୍ମ ହେବାର ଅଳ୍ପ ସମୟ ପରେ ବେଶ୍ ଦମ୍ଭ ହୋଇଯାଏ । ଟଳୁ ଉଠି ଚଁଆ ହେଉଁ କରେ ଓ ମା ଠାରୁ ଦୁଧ ଖାଏ । ସଙ୍ଗେସଙ୍ଗେ ମା ତାକୁ ଧରି ପାଣି ଭିତରକୁ ଚାଲିଯାଏ ।

ଛୁଆ ଜନ୍ମଠାରୁ ଛ ସାତ ମାସ ବୟସର ହେବାଯାଏ ମା ତାକୁ ପିଠିରେ ବସାଇ ପାଣିରେ ପହଁରୁଥାଏ । ତାପରେ ତାକୁ ପାଣିରେ ପହଁରିବାକୁ ଛାଡ଼ିଦିଏ ।

ଛୁଆ ପାଣିରେ ପହଁରୁଥିବାବେଳେ ମା ଅଳ୍ପ ଦୂରରେ ରହି ତାକୁ ଜଗିଥାଏ । ସେତେବେଳେ ସେ ପ୍ରତିମୁହୂର୍ତ୍ତରେ ଗୋଟାଏ ଅଦ୍ଭୁତ ପ୍ରକାରର ଗର୍ଜନ କରେ । ଯୋରରେ ପ୍ରଶ୍ୱାସ ମାରିବା

ଯୋଗେ ଏ ଶବ୍ଦ ହୁଏ; ସତେ ଯେମିତି ସେ ଶତ୍ରୁମାନଙ୍କୁ ଜଣାଇ ଦିଏ, "ସାବଧାନ, ମୋ ପିଲାର କେହି କିଛି କ୍ଷତି କର ନାହିଁ। ଏଠାରେ ମୁଁ ରହିଛି।"



( ଛୁଆକୁ ପିଠିରେ ଧରି ପହଁରୁ ଅଛି )

ଜଳହସ୍ତୀ ହିଂସ୍ର ପ୍ରାଣୀ ନୁହେ। ମାତ୍ର ତା ଉପରକୁ ବା ତା' ପିଲା ଉପରକୁ କୌଣସି ବିପଦ ଆସିବାର ଆଶଙ୍କା କଲେ ସେ ଅତି ଭୀଷଣ ହୋଇଉଠେ।

ପାଣି ଭିତରେ କୁମ୍ଭୀର ଓ ଶୁଖିଲାରେ ବାଘ ତାର ବଡ଼ ଶତ୍ରୁ। ଏ ଦୁହେଁ ଛୁଆକୁ ଖାଇଯିବା ଲାଗି ସବୁବେଳେ ସୁଯୋଗ

ଜନ୍ତୁ ଥାନ୍ତି । ମା ତାହା ଜାଣିପାରିଲେ ଆସି ତାଙ୍କ ସହିତ ଯୁଦ୍ଧ କରେ । ଅଧିକାଂଶ ସମୟରେ ଅବଶ୍ୟ ସେ ମରେ; କିନ୍ତୁ ଶତ୍ରୁକୁ ଏଭଳି ଆଘାତ କରିଥାଏ ଯେ, ସେ ତା ଜୀବନରେ ଆଉ କେବେ ହିପୋଛୁଆ ଖାଇବାକୁ ମନ କରିବ ନାହିଁ । ବେଳେବେଳେ ହିପୋ ଆକ୍ରମଣରେ ବାଘ ଓ କୁମ୍ଭୀର ମରିଯାଇଥିବାର ମଧ୍ୟ ଦେଖାଯାଏ ।

ଜଳହସ୍ତୀମାନେ ଦଳ ବାନ୍ଧି ରହନ୍ତି । ତେଣୁ ଆପଦ ବିପଦ ପଡ଼ିଲେ ସମସ୍ତେ ଏକଯୁଟ ହୋଇଯାଆନ୍ତି ଓ ଶତ୍ରୁ ସହିତ ଲଢ଼ନ୍ତି । ତେଣୁ ଛୁଆ ଜଳହସ୍ତୀର କଅଁଳ ମାଂସ ଖାଇବାକୁ ବାଘ ପାଟିରୁ ଲାଳ ବୋହିଲେ ମଧ୍ୟ ସେ ତା ଉପରେ ଆକ୍ରମଣ କରିବାକୁ ସହଜରେ ସାହସ କରେ ନାହିଁ ।

ଛୁଆଟି ଦୁଇ ବର୍ଷ ପର୍ଯ୍ୟନ୍ତ ମା ସଙ୍ଗେ ସଙ୍ଗେ ରହିଥାଏ । ତା ପରେ ତାର ନାବାଳକ ଅବସ୍ଥା କଟିଯାଏ । ସେ ଦଳରେ ମିଶି ବା ସ୍ୱତନ୍ତ୍ର ଦଳ ଗଢ଼ି ଚଳି ପ୍ରଚଳ ହୁଏ ।

ହିପୋର ପରମାୟୁ ସାଧାରଣତଃ ପଚିଶ ଷାଠିଏ ବର୍ଷ । ଚିଡ଼ିଆଖାନାରେ ପୋଷା ହୋଇଥିବା ହିପୋ ଏତେ ବର୍ଷ ବଞ୍ଚି ରହି ପାରନ୍ତି ନାହିଁ । ଏଠାରେ ଏମାନେ ପାଣି ଅପେକ୍ଷା ବେଶି ସମୟ ମାଟି ଉପରେ ରହନ୍ତି । ବୋଧହୁଏ କେତେକ ଦିନ ରହିଗଲା ପରେ ବାହାରୁ କୌଣସି ବିପଦ ଆସିବାର ଆଶଙ୍କା ନାହିଁ ବୋଲି ବୁଝିପାରନ୍ତି । ତେଣୁ ପାଣିରେ ନ ରହି କୂଳରେ ଥିବା ସନ୍ତସନ୍ତିଆ ଓଦା ଓ ଅନ୍ଧାରୁଆ ଜାଗାରେ ଶୁଅନ୍ତି ବା ବୁଲବୁଲ କରନ୍ତି । ସେଥିପାଇଁ ଚିଡ଼ିଆଖାନାମାନଙ୍କରେ ପାଣି ପାଖରେ କିଛି ଗୁମ୍ଫଆଡ଼େ ନକଲ କରି ଘର ତିଆରି ହୋଇଥାଏ । ଗୋଟିଏ ମାତ୍ର ଦୁଆରମୁହଁ ଥାଏ । ସେହି ଘରର କୋଣ ଭିତରେ ଜଳହସ୍ତୀ ଅଧିକାଂଶ ସମୟ ଶୋଇ କଟାଇ ଦିଏ ।

ଆଉ ଗୋଟିଏ ଜାତିର ଜଳହସ୍ତୀ ଅଛନ୍ତି, ସେମାନଙ୍କ ଆକାର ସାନ । ସେମାନଙ୍କୁ 'ବାମନ ଜଳହସ୍ତୀ' ଆଖ୍ୟା ଦିଆଯାଇପାରେ । ବଡ଼ ବଣୁଆ ପୁଷ୍କରିଣୀ ପରି ଏଗୁଡ଼ିକ ଦେଖାଯାନ୍ତି; ମାତ୍ର ଅଧିକାଂଶ ସମୟରେ ପାଣି ଭିତରେ ରହନ୍ତି । ବଡ଼ ଜଳହସ୍ତୀ ପରି ପାଣିଉପରେ ନ ଭାସି ଏମାନେ ଏମାନଙ୍କ ଦେହକୁ ସବୁ ସମୟରେ ପାଣି ଭିତରେ ବୁଡ଼ାଇ ରଖିଥାଆନ୍ତି । ପ୍ରତିମୁହୂର୍ତ୍ତରେ ଉପରକୁ ମୁହଁ ଦେଖାଇ ନିଃଶ୍ୱାସ ନିଅନ୍ତି । ପୁଣି ସଙ୍ଗେ ସଙ୍ଗେ ବୁଡ଼ିଯାଆନ୍ତି । ଏମାନେ ସବୁବେଳେ କାର୍ଯ୍ୟବ୍ୟସ୍ତ ଥିଲାପରି ଜଣାପଡ଼ନ୍ତି । ମିନିଟିଏ ଦୁଇ ମିନିଟ୍ ମଧ୍ୟ ଅସ୍ଥିର ହୋଇ ରହିପାରନ୍ତି ନାହିଁ । ପାଣି ଭିତରେ ସବୁବେଳେ ଏପାଖ ସେପାଖ ହେଉଥାନ୍ତି ଓ ଅତି ଦ୍ରୁତବେଗରେ ପହଁରୁ ଥାଆନ୍ତି ।



ଆଫ୍ରିକାର ଆଦିମଅଧିବାସୀ ନିଗ୍ରୋମାନଙ୍କର ଜଳହସ୍ତୀ ମାଂସ ଅତି ପ୍ରିୟ ଖାଦ୍ୟ । ଗୋଟିଏ ଜଳହସ୍ତୀ ଶିକାର କଲେ ଅନେକ ଦିନ ପର୍ଯ୍ୟନ୍ତ ଖାଦ୍ୟ ସଂଗ୍ରହ ଚିନ୍ତାରୁ ନିସ୍ତାର ମିଳିବ । ତେଣୁ ସେମାନେ ଜଳହସ୍ତୀ ଶିକାର କରିବାକୁ ବେଶି ଭଲ ପାଆନ୍ତି । ସେଥିରେ ଖାଦ୍ୟ ତ ମିଳେ; ଆମୋଦ ବି ହୁଏ ।

ଜଳହସ୍ତୀ ଶିକାର ଅତି କଷ୍ଟକର କଥା । ଶୁଖିଲାରେ ଥିବାବେଳେ ତାର ବିଶେଷ କରାମତି ନ ଥାଏ; ମାତ୍ର ବିପଦ ଆଶଙ୍କା କଲେ ସେ ସଙ୍ଗେ ସଙ୍ଗେ ଦଉଡ଼ି ପାଣି ମଝିକୁ ପଳାଇଯାଏ । ସେତେବେଳେ ତାକୁ ଆଉ ପାରେ କିଏ ? ଡଙ୍ଗା ବା ନାଆରେ ବସି ତା ପିଛା ଧଇଲେ ହୁଏତ ସେ ପାଟିରେ କାମୁଡ଼ି ଡଙ୍ଗା କଣା କରିଦେବ; ନଚେତ୍ ତାହାକୁ ଓଲଟାଇ ପକାଇବ । ଶିକାରୀମାନଙ୍କୁ ହାବୁଡ଼ରେ ପାଇଲେ ଚୂର୍ଣ୍ଣି ଟିକ୍ ଟିକ୍ କରି ପକାଇବ ।

କେତେକ ଧନ ଓ ସ୍ୱଳ୍ପ ଯାହା କଲ ପରେ ଯେତେବେଳେ ଜାଣନ୍ତି ଯେ, ଜଳହସ୍ତୀ ରହିବା ସ୍ଥାନ ନିକଟ ହୋଇଗଲାଣି, ସେତେବେଳେ ଅତି ସାବଧାନ ହୋଇଯାନ୍ତି । ପାଟିଗୁଣ୍ଡ ତ ଦୂରର କଥା, କଥାବାର୍ତ୍ତା ବି ଏକାବେଳକେ ବନ୍ଦ । ପ୍ରତ୍ୟେକ ଭେଳାରେ ଦଳେ ବର୍ଚ୍ଛା ବାଗେଇ ଧରି ପ୍ରସ୍ତୁତ ହୋଇ ରହିଥାନ୍ତି, ଅନ୍ୟ ଦଳକ ଭେଳା ଯେପରି ଠିକ୍‌ରୂପେ ଚାଲିବ, ସେଥିପ୍ରତି ତତ୍ପର ଥାଆନ୍ତି ।

ଭେଳା ଅତି ଧୀର ଗତିରେ ଓ ନିଃଶବ୍ଦରେ ଆଗକୁ ଯାଉଥାଏ । ଜଳହସ୍ତୀ ଦଳ ଯେତେବେଳେ ଜଳକ୍ରୀଡ଼ା କରୁଥାନ୍ତି, ସେତେବେଳେ ପାଣି ଅତି ଯୋରରେ ଲହଡ଼ୀ ଖେଳେ, ସେ ଶବ୍ଦ ମଧ୍ୟ ବହୁତ ଦୂରକୁ ଶୁଣାଯାଏ । ଶିକାରୀମାନେ ଏହି ଶବ୍ଦ ଶୁଣି ପାରିଲେ ଭେଳା ଉପରେ ଆଉ ଠିଆ ହୋଇ ରହନ୍ତି ନାହିଁ, ଶୋଇ ପଡ଼ନ୍ତି ।

କ୍ରମେ ଅନେକଗୁଡ଼ିଏ ଜଳହସ୍ତୀ ଆନନ୍ଦମନରେ ପାଣିରେ ଖେଳୁଥିବାର ସେମାନେ ଦେଖିପାରନ୍ତି । କେହି ଏକାକୀ ଯୋରରେ ପହଁରିବାରେ ଲାଗିଥାଏ । କେହି କେହି ନିଜ ମଧ୍ୟରେ କଜଭୁକରେ ମଗମର ଲଗାଇ ଥାଆନ୍ତି । କେହି ବା ବିରାଟ ମୁହଁଟିକୁ ପାଣି ଉପରେ ରଖି ଘୁମାଉଥାଏ । କେହି ଅନ୍ୟ ଉପରକୁ ପାଣି ଫିଙ୍ଗୁଥାଏ ।

ଭେଳା ଅତି ନିକଟକୁ ଆସିଗଲେ ଶିକାରୀମାନେ ପ୍ରଥମେ ଗୋଟିଏ ଜଳହସ୍ତୀକୁ ଲକ୍ଷ୍ୟ କରି ଦଉଡ଼ିବନ୍ଧା ବର୍ଚ୍ଛା ଫିଙ୍ଗନ୍ତି । ତାର ଆଖି, ପାଟି ବା ନାକ ଭିତରକୁ ପ୍ରଥମ ବର୍ଚ୍ଛା ମାରିବାକୁ ସେମାନେ ଚେଷ୍ଟା କରନ୍ତି । ତା ପରେ ଆଉ ଲୁଚ୍‌କାଳ ଖେଳିବାର ଆବଶ୍ୟକତା ନ ଥାଏ । ଖୁବ୍ ଜୋରରେ ପାଟିକରି, ନାଚ କୁଦ,

ତୋଳି ପିଟି ଅନ୍ୟ ଜନ୍ତୁଗୁଡ଼ିକୁ ସେଠାରୁ ତଡ଼ିଦେବାର ଉଦ୍ୟମ ହୁଏ । ସେମାନେ ରହିଲେ ବିପଦ ଘଟିବାର ଖୁବ୍ ଆଶଙ୍କା ।

ସାଙ୍ଗ ସାଥୀ ଭୟରେ ପଳାଇଗଲେ ହତଭାଗ୍ୟ ଶିକାରକୁ ଆୟତ୍ତକୁ ଆଣିବା ସହଜ । ବର୍ଚ୍ଛା ମାଡ଼ଖାଇ ସେ ବିକଟ ଗର୍ଜନ କରି-ଉଠେ ଏବଂ ସେଠାରୁ ପଳାଇଯିବାକୁ କିମ୍ବା ପାଣି ଭିତରେ ବୁଡ଼ିଯିବାକୁ ଚେଷ୍ଟା କରେ । ସେ ଯେତିକି ଦୂରକୁ ଚାଲି ଯାଉଥାଏ, ବର୍ଚ୍ଛା ବଉଡ଼ା ସେତିକି ଲମ୍ବାଇ ଦେବାକୁ ପଡୁଥାଏ । ତା ନ ହେଲେ ଭେଳା ସହ ଶିକାରୀମାନେ ପାଣିରେ ବୁଡ଼ିଯିବେ । ତା ଗତିକୁ ଲକ୍ଷ୍ୟ କରି ଭେଳା ପଛେପଛେ ଚାଲିଥାଏ । ପୁଣି ସୁବିଧା ହେଲେ ଆଉ ତିନି ଚାରିଗୋଟି ବର୍ଚ୍ଛା ତା ଦେହକୁ ଲକ୍ଷ୍ୟ କରି ମରାଯାଏ । ଜନ୍ତୁଟିର ରକ୍ତରେ ସେ ଅଞ୍ଚଳର ପାଣି ନାଲି ହୋଇଯାଏ ।



ମୃତ୍ୟୁ ଯନ୍ତ୍ରଣାରେ ଅସ୍ଥିର ହୋଇ ସେହି ଭୀଷଣ ଜନ୍ତୁଟି ଥରକୁ ଥର ପାଣି ଭିତରେ ବୁଡ଼ିଯାଉଥାଏ ଓ କିଛି ସମୟ ପରେ ଉପରେ

ଭାସିଉଠୁଥାଏ । ଏହାପର ପାଞ୍ଚ ଛଅ ଘଣ୍ଟା ଯାଏ ଶିକାରୀ ଓ ଶିକାର ମଧ୍ୟରେ ଟଣାଓଟରା ଚାଲେ । ଶେଷକୁ ପାଣି ତଳେ ସେ ମରିଯାଏ । ବର୍ଚ୍ଛା ଦଉଡ଼ିରେ ଆଉ ଟାଣ ନ ପଡ଼ିଲେ ଶିକାରୀମାନେ ବୁଝିଯାଆନ୍ତି ଯେ, ସେମାନଙ୍କର ଜୟ ହୋଇଛି । ସେମାନେ ବର୍ଚ୍ଛା-ବନ୍ଧା ଦଉଡ଼ିକୁ ଆସ୍ତେ ଆସ୍ତେ ଟାଣନ୍ତି, ଭେଳା କୂଳକୁ ଯାହାକରେ, ତା ପଛେ ପଛେ ଜଳହସ୍ତୀର ମୃତଦେହ ଭାସି ଭାସି ଯାଉଥାଏ ।

—୨—

ଅନେକ ସମୟରେ ମାଟି ଉପରେ ବି ଜଳହସ୍ତୀ ଶିକାର କରାଯାଏ ।

ଜଳହସ୍ତୀ ଦଳ ରାତିରେ ପାଣିରୁ ଉଠି ଶୁଖିଲାକୁ ଆସନ୍ତି ଓ ଫସଲ କିଆରୀ, ବଣଜଙ୍ଗଲ ବା ବାଡ଼ ବଗିଚାରେ ପଶି ଖାଦ୍ୟ ଖାଆନ୍ତି । ସେମାନଙ୍କର ସ୍ୱଭାବ, ଥରେ ଯେଉଁ ବାଟ ଦେଇ ଯାଇଥିବେ, ସେହି ବାଟରେ ଫେରିବେ ଓ ପ୍ରତିଦିନ ସେହିବାଟରେ ଯିବା ଆସିବା କରିବେ ।

ଶିକାରୀମାନେ ପ୍ରଥମେ ଜଳହସ୍ତୀ ଦଳର ବାଟ ଠିକଣା କରି-ନଅନ୍ତି । ସେହି ବାଟରେ ଥିବା କୌଣସି ଗଛ ଉପରେ ସେମାନେ ବସି ରହନ୍ତି । ହାତରେ ଅତି ବେଶି ଓଜନର ବର୍ଚ୍ଛା ଧରିଥାଆନ୍ତି । ଜଳହସ୍ତୀ ଦଳ ସେ ବାଟ ଦେଇ ଗଲାବେଳେ ସେମାନେ ଚୁପଚାପ୍ ବସିରହନ୍ତି । ସର୍ବଶେଷ ଜନ୍ତୁଟି ଯେତେବେଳେ ଗଛ ତଳକୁ ଆସେ, ସେତେବେଳେ ଗୋଟିଏ ନୁହେଁ, ତିନି ଚାରିଗୋଟି ବର୍ଚ୍ଛା ଏକ ସମୟରେ ସେମାନେ ଉପରୁ ମାରନ୍ତି । ବର୍ଚ୍ଛାମାଡ଼ ଖାଇ ଜନ୍ତୁଟି ପ୍ରାଣଭୟରେ ସେଠାରୁ ଦଉଡ଼ି ପଳାଇଯାଏ । ସେତେବେଳେ ସେ ବାଟଘାଟ ମାନେ ନାହିଁ । ଏକା ନିଃଶ୍ୱାସକେ ତିନି ଚାରି ମାଇଲ

ଦଉଡ଼ ଗଲା ପରେ ଦେହରୁ ଅଧିକ ରକ୍ତ ବୋହିଯିବାରୁ ଦୁର୍ବଳ ହୋଇପଡ଼େ ।

ଶିକାରୀମାନେ ସେ ରାତିରେ ଆଉ ତା ପିଚ୍ଛା ଧରନ୍ତି ନାହିଁ । ସେହି ଟଙ୍ଗ ଉପରେ ବସି ରାତି କଟାନ୍ତି । ପରଦିନ ସକାଳେ ତାକୁ ଖୋଜିବାକୁ ବାହାରନ୍ତି । ଅଧିକାଂଶ ସମୟରେ ପାଣିରେ ମୃତଦେହ ଭାସୁଥିବାର ଦେଖାଯାଏ ।

—୬—

ବନ୍ଧୁକ ଆବିଷ୍କାର ହେବା ପରଠାରୁ ଜଳହସ୍ତୀ ଶିକାର ଖୁବ୍ ସହଜ ହୋଇପଡ଼ିଛି । ଜଣେ ଶିକାରୀ ତାଙ୍କ ଶିକାର ବିବରଣୀରେ ଲେଖିଛନ୍ତି ।

କ୍ରମେ ଅନ୍ଧାର ହୋଇ ଆସୁଥାଏ; କିନ୍ତୁ ରାତି ହୋଇ ନ ଥାଏ । ପରିଷ୍କାର ଦେଖା ନ ଗଲେ ମଧ୍ୟ ବାଟ ଘାଟ ଚିହ୍ନି ହେଉଥାଏ । ମୁଁ ବନ୍ଧୁକ ଧରି ନଦୀ କୂଳର ଗୋଟିଏ କାଣ୍ଟାଗଛର ବଣ ଭିତରେ ପଶିଲି, ବଣଟି ଅତି ନିଘଞ୍ଚ ।

ଅତି ସାବଧାନରେ କେତେକ ବାଟ ଗଲା ପରେ ଦେଖିଲି, ସାତଗୋଟି ଜଳହସ୍ତୀ ଅଧେ ପାଣି ଓ ଅଧେ ଶୁଖିଲାରେ ନିଶ୍ଚିନ୍ତ ମନରେ ଶୋଇଅଛନ୍ତି । ସେମାନଙ୍କ ଶୁଣିବା ଶକ୍ତି ଏତେ ବେଶି ଯେ, ମୁଁ ଖୁବ୍ ଆସ୍ତେ ଆସ୍ତେ ପାଦ ପକାଉଥିଲେ ମଧ୍ୟ, ସେମାନେ ଶବ୍ଦ ଶୁଣି ଚମକି ଉଠିଲେ । ସେମାନଙ୍କ ଗାଢ଼ ନିଦ ଭାଙ୍ଗିଗଲା । ସେମାନେ ସଙ୍ଗେସଙ୍ଗେ ପାଣି ଭିତରକୁ କୁଦିପଡ଼ି ଗଭୀର ଜଳରେ ବୁଡ଼ିଗଲେ । ମୁଁ ସେମାନଙ୍କର ଆଉ ଚିହ୍ନ ବର୍ଣ୍ଣ ଦେଖିବାକୁ ପାଇଲି ନାହିଁ; ତଥାପି ଚୁପ୍ ହୋଇ ଠିଆହୋଇଥାଏ ।

ଅଳ୍ପ ସମୟ ପରେ ନଇ ମଝିରୁ ଶବ୍ଦ ଶୁଣାଗଲା । ପାଣିରେ ଭାରି ଜିନିଷ ପିଟିଲେ ଯେଉଁଭଳି ଶବ୍ଦ ହୁଏ, ସେହିଭଳି ଶବ୍ଦ । ସେହି

ଶବ୍ଦକୁ ଅନୁସରଣ କରି ମୁଁ କାଣ୍ଡଶର ବଣରୁ ବାହାର ନଦୀକୂଳ ଖୋଲା ଜାଗାକୁ ଗଲି । ଜହ୍ନାଲୋକ,ପରିଷ୍କାର ସେମାନଙ୍କୁ ଦେଖିବାକୁ ପାଇଲି । ତେଣୁ ମୁଁ ଜାଣି ପାରିଲି ଯେ, ସେଥିରୁ ଗୋଟିଏ ପୁରୁଷ ଓ ତିନିଗୋଟି ସ୍ତ୍ରୀ ଜନ୍ତୁ । ସମସ୍ତେ ପାଣିରେ ପହଁରି ଖୁସିମନରେ ଖେଳୁଅଛନ୍ତି । ଶବ୍ଦ ଶୁଣି ସିନା ଡରିଯାଇଥିଲେ; ମାତ୍ର ବିପଦ ଯେ କେତେ ନିକଟରେ, ତାହା ଜାଣିପାରି ନ ଥିଲେ ।

ମୁଁ ପ୍ରଥମେ ମୋ ଆଡ଼କୁ ରହିଥିବା ସ୍ତ୍ରୀ ଜଳହସ୍ତୀର ମୁଣ୍ଡକୁ ଲକ୍ଷ୍ୟ କରି ବନ୍ଧୁକ ଫୁଟାଇଲି । ଗୁଳି ତାର ତାଳୁ ଉପରି ଭେଦ କରିବା ମାତ୍ରକେ ସେ ତତ୍‌ପରି ପାଣି ଭିତରେ ଆଠ ଦଶ ଥର ଘୂରିଗଲା । ସେତେବେଳେ ଯେଉଁ ଶବ୍ଦ ହେଲା, ସେଥିରେ ସେ ଅଞ୍ଚଳ କମ୍ପି ଉଠିଲା । ଅନ୍ୟ ତିନୋଟି ଏ ବିପଦ ଦେଖି ପାଣିରେ ବୁଡ଼ିଗଲେ । ମୁଁ ଆଉ ସେମାନଙ୍କ ପ୍ରତି ଧ୍ୟାନଦେଲି ନାହିଁ । ଗୁଳିମାଡ଼ ଖାଇଥିବା ଶିକାରଟି କାଳେ ଆଖି ଆଗରୁ ଅଦୃଶ୍ୟ ହୋଇଯିବ, ସେଥିପାଇଁ ତାର ଗତିବିଧି ଏକଧ୍ୟାନରେ ଦେଖୁଥାଏ ।

ଆହତ ଜଳହସ୍ତୀ କିଛି ସମୟ ଅଚେତ ହୋଇ ଯାଇଥିଲା । ତା ପରେ ଚେତନା ପାଇ ପାଣିରେ ବାଡ଼େଇ କଚାଡ଼ି ହେବାକୁ ଲାଗିଲା । ଥରକୁଥର ସମସ୍ତ ଦେହ ପାଣି ଭିତରେ ବୁଡ଼ାଇ ଦେଉଥାଏ, ପୁଣି ପରମୁହୂର୍ତ୍ତରେ ମୁହଁକୁ ଟେକି ଦେଉଥାଏ ।

ମୁଁ ପୁଣି ଥରେ ଗୁଳି ମାଇଲି । ଏଥରକ ସେ ଏକାବେଳକେ ନିସ୍ତେଜ ହୋଇପଡ଼ିଲା । ସେ ବାଡ଼େଇପିଟି ହେବା ଫଳରେ ପାଣି ଏତେ ଜୋରରେ ଲହଡ଼ୀ ମାରୁଥିଲା ଯେ, ସେହି ଲହଡ଼ୀ ସୁଅରେ ସେ କୂଳକୁ ଚଢ଼ିହୋଇ ଚାଲିଆସିଲା ।

ପାଣିରେ କୁମ୍ଭୀରର ଭୟ ଥାଏ । ତଥାପି ଶିକାର କରିଥିବାରୁ ମୋ ମନ ଏତେ ଖୁସି ହୋଇଯାଇଥାଏ ଯେ, ମୁଁ ସଙ୍ଗେସଙ୍ଗେ

ତାକୁ କୂଳକୁ ଟାଣି ଆଣିବା ପାଇଁ ପାଣି ଭିତରେ ପଶିଗଲି । ମୁଁ ଭାବିଥିଲି, ସେ ନିଶ୍ଚୟ ମରିଯାଇଥିବ । ମୁଁ ତା ଲାଞ୍ଜ ଧରି ପାଣିରୁ ଟାଣିଆଣିବି ।

ମାତ୍ର ଆଶ୍ଚର୍ଯ୍ୟ ପାଣିରେ ପଶି ମୁଁ ତା ଲାଞ୍ଜରେ ହାତଦେବା-ମାତ୍ରକେ ବୁଝିପାରିଲି, ସେ ମରି ନାହିଁ । ତା ତେଜ ମଧ୍ୟ କମି ନାହିଁ । ସେ ମୋତେ ଘୋଷାରି ପାଣି ଭିତରକୁ ଟାଣି ନେବାକୁ ଚେଷ୍ଟା କରୁଛି । କ୍ରମେ ପାଣି ମୋର ଅଣ୍ଟାପାଏ ହେଲା, ଛାତିଏ ହେଲା । ଯେତେବେଳେ ବେକ ପାଖକୁ ପାଣି ଲାଗିଲା, ମୁଁ ଆଉ ନିଶ୍ଚିନ୍ତ ରହିପାରିଲି ନାହିଁ । ଅଣ୍ଟାରୁ ଛୁରୀ ବାହାର କରି ତା ପିଠି ଉପରେ ହାତେଲମ୍ବର ଚମଡ଼ା ଛିଲି ପକାଇଲି । ସେହି ଚମଡ଼ାକୁ ଧରି ଜୋରରେ କୂଳକୁ ଟାଣିବାକୁ ଲାଗିଲି । ଏହି ସମୟରେ ମୋର ସାଙ୍ଗ ସାଥୀମାନେ ଆସି ସେଠାରେ ପହଞ୍ଚିଗଲେ । ସେମାନେ ସାହାଯ୍ୟ କରି ନ ଥିଲେ, ଶିକାରକୁ ଶୁଖିଲାକୁ ଆଣିବା ସମ୍ଭବ ହୋଇପାରି ନ ଥାନ୍ତା । ଶୁଖିଲାରେ କିଛି ସମୟ ଶୁକ୍‌ଶୁକ୍ ହେଲା ପରେ ସେହି ବିଶାଳ ଦେହ ଅଚଳ ହୋଇପଡ଼ିଲା ।

—୮—

ପାଣି ଭିତରେ କୁମ୍ଭୀରର ଜଳହସ୍ତୀକୁ ଯେତିକି ଡର, ଜଳହସ୍ତୀର କୁମ୍ଭୀରକୁ ମଧ୍ୟ ସେତିକି ଭୟ । ଗୋଟିଏ ଅନ୍ୟକୁ କାବୁ କରିବା ପାଇଁ ସବୁ ସମୟରେ ଛକା ପଞ୍ଝାରେ ରହିଥାଆନ୍ତି ।

ଜଳହସ୍ତୀର ମାଂସ କୁମ୍ଭୀରର ଅତି ପ୍ରିୟ ଖାଦ୍ୟ । ମାତ୍ର ଗୋଟାଏ ବଡ଼ ଜଳହସ୍ତୀ ଶିକାର କରିବା ତା ପକ୍ଷରେ ଏକାବେଳକେ ଅସମ୍ଭବ । ତେଣୁ ସେ ଛୁଆଟିଏ ଧରି ମନଖୁସିରେ ଖାଇବା ପାଇଁ ସବୁ ସମୟରେ ଓର ଉଣ୍ଡୁଥାଏ ।

ଜଳହସ୍ତୀ ଓ କୁମ୍ଭୀର ଭିତରେ କପର ଲଢ଼େଇ ଲାଗେ, ସେସମ୍ପର୍କରେ ଜଣେ ଶିକାରୀ ଗୋଟିଏ ସୁନ୍ଦର ବର୍ଣ୍ଣନା ଦେଇଛନ୍ତି ।

ସେ ଲେଖିଛନ୍ତି—ଆମେ ଦଳେ ସାଙ୍ଗହୋଇ ଜଳହସ୍ତୀ ଶିକାର କରିବାକୁ ଯାଇଥିଲୁ । ଆମ ଜୀବନରେ ତାହା ହିଁ ପ୍ରଥମ ଜଳହସ୍ତୀ ଶିକାର । ଆମେ ଯାଇ ନୀଳନଦୀକୂଳର ଗୋଟିଏ ସୁବିଧା ସ୍ଥାନରେ ଗଛ ଉପରେ ବସି ସୁଯୋଗକୁ ଅପେକ୍ଷା କରୁଥାଉଁ ।

ଅନ୍ଧାର ହେବାକୁ ଆଉ ଅଳ୍ପ ସମୟ ବାକି ଅଛି । ଆମେ ଦେଖିଲୁ, ପଞ୍ଚାଏ ଜଳହସ୍ତୀ ଗୋଲାକାରରେ ଦଳ ବାନ୍ଧି ପାଣିରେ ପହଁରି ପହଁରି ଯାଉଅଛନ୍ତି । ସେମାନେ ସ୍ରୋତର ଉପରକୁ ଆସୁଥାଆନ୍ତି । ପାଖ ହୋଇଯିବାରୁ ଦେଖାଗଲା ଯେ, ମୋଟ ପନ୍ଦର ଷୋହଳଟି ପର୍ଯ୍ୟନ୍ତ ବଡ଼ ଜନ୍ତୁ । ସେମାନଙ୍କ ମଝିରେ ତିନୋଟି ଛୁଆ । ସେହି ଛୁଆଙ୍କୁ ରକ୍ଷା କରିବାପାଇଁ ସେମାନେ ଏପରି ଚାରି କଡ଼ ଘେରି ବ୍ୟୂହ କରିଥାଆନ୍ତି ।

ହଠାତ୍ ସେମାନଙ୍କ ମଧ୍ୟରେ ଗୋଳମାଳ ଆରମ୍ଭ ହୋଇଗଲା । କାରଣ ବୁଝିବା ପାଇଁ ମୁଁ ଏକଧ୍ୟାନରେ ଚାହିଁ ରହିଲି । ଦେଖିଲି, ପାଣି ଭିତରେ ବୁଡ଼ିବୁଡ଼ି ଗୋଟାଏ ମସ୍ତବଡ଼ କୁମ୍ଭୀର ସେ ବ୍ୟୂହ ମଝିକୁ କପରି ଚାଲିଆସିଛି । ତିନୋଟି ଛୁଆ ମଧ୍ୟରୁ ଗୋଟିକୁ କାମୁଡ଼ି ଧରିଛି ।

ଆମ୍ଭେମାନେ ଆଉ ବନ୍ଧୁକ ଫୁଟାଇବୁ କଅଣ ? କୁମ୍ଭୀର ଓ ଜଳହସ୍ତୀ ଲଢ଼େଇ ଦେଖିବା ପାଇଁ ଗଛ ଉପରୁ ଓହ୍ଲାଇ ଆସିଲୁ । ନଈ କୂଳେ କୂଳେ ସେମାନଙ୍କସଙ୍ଗତ ଉପରକୁ ଚାଲିଲୁଁ ।

ସେଠାରେ ନଈରେ ପାଣି ଅଳ୍ପ, କୂଳ ପାଖ । ଗୋଟିଏ ଜଳହସ୍ତୀ ବୁଡିଗଲେ, ତା ଦେହର ଅଧେ ଅଂଶ ପାଣି ଉପରକୁ ରହିବ । କୁମ୍ଭୀରର ଗତିବିଧି ମଧ୍ୟ ଦେଖାଯାଉଥାଏ ।

କୁମ୍ଭୀର ଲୋଭରେ ପଡ଼ି ସିନା ଛୁଆଟିକୁ କାମୁଡ଼ି ଧରିଲା; ମାତ୍ର ଦଳ ମଝିରୁ ଖସି ଚାଲିଯିବାର ଉପାୟ ପାଉ ନ ଥାଏ । ସେ ଏପାଖ ସେପାଖ ବୁଲି ପଳାଇଯିବାକୁ ଚେଷ୍ଟା କରୁଥାଏ; ମାତ୍ର ଜଳହସ୍ତୀ ଦଳ ତାକୁ ବାଟ ଛାଡ଼ିଦେଲେ ତ ?

ଏହିପରି କିଛି ସମୟ ଘୂରାଘୂରି ଛକାପଞ୍ଝା ଖେଳ ପରେ ଗୋଟିଏ ଜଳହସ୍ତୀ ହାବୁଡ଼ରେ କୁମ୍ଭୀର ପଡ଼ିଗଲା । କୁମ୍ଭୀର ଧରିଥିବା ଛୁଆକୁ ପାଟିରୁ ଛାଡ଼ିଦେଇ ପ୍ରାଣବିକଳରେ ତାକୁ କାମୁଡ଼ିବାକୁ ଆଁ ମେଲା କରିଦେଲା । ଠିକ୍ ସେହି ସମୟରେ ପଛରେ ଥିବା ଆଉ ଗୋଟାଏ ଜଳହସ୍ତୀ କୁମ୍ଭୀର ଲାଞ୍ଜକୁ କାମୁଡ଼ି-ଧରି ପାଟି ବନ୍ଦ କରିଦେଲା । ଆଉ କୁମ୍ଭୀର ଯାଏ କୁଆଡ଼େ ? ସେ ସେଠାରେ କାଢ଼େଇ ପିଟି ହେଲା । ପଛକୁ ବୁଲି ପଡ଼ିବାକୁ ବହୁତ ଚେଷ୍ଟା କଲା; ମାତ୍ର ପାରିଲା ନାହିଁ ।

ଆଗରେ ଥିବା ଜଳହସ୍ତୀଟି ତାର ଆଗ ପାଦ ଉଠାଇ କୁମ୍ଭୀର ମୁଣ୍ଡ ଉପରେ ଥୋଇଦେଲା । କେବଳ ଥୋଇଦେଲା ନାହିଁ, ଥରକୁ ଥର ପାଦ କଚି ତା ଉପରେ ନାଚିବାକୁ ଲାଗିଲା । ସେତେବେଳେ ଜଳହସ୍ତୀ ଦଳ ମଧ୍ୟରେ କି ଉଲ୍ଲାସ !

କୁମ୍ଭୀର ବିଚରା ଜଳହସ୍ତୀ ଛୁଆର କଅଁଳ ମାଂସ ଖାଇବାକୁ ଲୋଭ କରି ଶେଷରେ ଜୀବନ ଦେଲା । ଏହି ଦୃଶ୍ୟ ଦେଖି ଆମେ ଏତେଦୂର ମୋହିତ ହୋଇଯାଇଥିଲୁ ଯେ, ଆଉ ଜଳହସ୍ତୀ ଶିକାର କରିବାକୁ ଆମର ହାତ ଉଠିଲା ନାହିଁ ।

—୯—

ପାଣି ଭିତରେ ତ କୁମ୍ଭୀର ଜଳହସ୍ତୀର ବଡ଼ ଶତ୍ରୁ; ଶୁଖିଲାରେ ବି ବାଘ ସିଂହ କମ୍ ନୁହନ୍ତି । ଗୋଟାଏ ଜନ୍ତୁ ଶିକାରରେ ପ୍ରଚୁର ଖାଦ୍ୟ; ପୁଣି ନରମ ମାଂସ । ଏଥିରେ କେଉଁ ମାଂସାଶୀ ପ୍ରାଣୀ ଲୋଭ ନ କରିବ ?

ତେବେ ସିଂହ ପରି ଜନ୍ତୁ – ନଦେ ପଶୁରାଜ, ସେ ବି ଜଳହସ୍ତୀ ଦଳ ଉପରେ ଆକ୍ରମଣ କରିବାକୁ ଭୟ କରେ । ଗୋଟିଏ ଜନ୍ତୁକୁ ଏକୁଟିଆ ପାଇଲେ ସଙ୍ଗେ ସଙ୍ଗେ ତା ଉପରକୁ କୁଦି ପଡ଼େ କିମ୍ବା ଦଳ ଭିତରୁ କଳ କୌଶଳରେ ଅନ୍ୟମାନଙ୍କ ଅଜ୍ଞାତରେ ଗୋଟିଏ ବୋଷାରି ଆଣିବାକୁ ଚେଷ୍ଟା କରେ ।

ଥରେ ଗୋଟିଏ ସିଂହ ଜଳହସ୍ତୀ ଶିକାର କରିବାକୁ ଯାଇ କପର ହନ୍ତସନ୍ତ ହୋଇଥିଲା, ସେ ସମ୍ପର୍କରେ ଜଣେ ପ୍ରତ୍ୟକ୍ଷଦର୍ଶୀ ସାହେବ ଲେଖିଛନ୍ତି—

ନଦୀ କୂଳରେ ଗୋଟିଏ ଉଚ୍ଚ ନିରାପଦ ସ୍ଥାନରେ ଆମ ତମ୍ବୁ ପଡ଼ିଥାଏ । ବନଯାଜ ଅରଣ୍ୟର ବହୁ ଅଞ୍ଚଳ ବୁଲିବୁଲି ଆମେ କ୍ଳାନ୍ତ ହୋଇ ରାତିରେ ଶୋଇପଡ଼ିଥାଉଁ । ବିକଟ ଗର୍ଜନରେ ଆମ ସମସ୍ତଙ୍କ ନିଦ ଏକସମୟରେ ଭାଙ୍ଗିଗଲା । ଭୟରେ ସମସ୍ତେ ଥରି-ଉଠିଲୁ । ହାତବୋମା, ବନ୍ଧୁକ ଓ ଖୁବ୍ ଶକ୍ତିଶାଳୀ ଲମ୍ବା ଟର୍ଚ୍ଚବତି ଧରି ନିଜନିଜ କୋଠରୀ ଭିତରୁ ପଦାକୁ ବାହାରିଆସିଲୁ । ତମ୍ବୁ ବାହାରେ ଠିଆହୋଇ ଦେଖିଲୁ, ଖଣ୍ଡେଦୂରରେ ଭୀଷଣ ଯୁଦ୍ଧ ଲାଗି-ଯାଇଛି । ଏକପକ୍ଷରେ ଗୋଟିଏ ସିଂହ ଓ ଅନ୍ୟପକ୍ଷରେ ପାଞ୍ଚ ସାତ ଗୋଟି ଜଳହସ୍ତୀ ।

ଆମେ ଅନୁମାନ କରିନେଲୁ, ସିଂହ ନଈକୁ ପାଣି ପିଇବା ଲାଗି ଆସିଥିଲା । ଜଳହସ୍ତୀ ଦେଖି ମାଂସ ଖାଇବାକୁ ତାର ଲୋଭ ହୋଇଛି । ସେ ଶିକାର କରିବାଲାଗି ଗୋଟିଏ ଜଳହସ୍ତୀ ଉପରକୁ ମାରବଳେ କୁଦିପଡ଼ିଛି । ଖୁବ୍ ନିକଟରେ ଯେ ଆଉ ଚାରି ପାଞ୍ଚ ଗୋଟି ଜଳହସ୍ତୀ ଅଛନ୍ତି, ବୋଧହୁଏ ସିଂହ ବିଚରା ତାହା ଜାଣି ପାରି ନ ଥିଲା । ଶିକାରର ପିଠି ଉପରକୁ କୁଦିପଡ଼ି ଗୋଟାଏ କାମୁଡ଼ା ଦେଲା ପରେ ଆଉ ଯାଏ କୁଆଡ଼େ ?

ଆହତ ଜଳହସ୍ତୀର ଗର୍ଜନରେ ପାଖରେ ଥିବା ଅନ୍ୟ ଜଳହସ୍ତୀଗୁଡ଼ିକ ଚମକ ଆସିଲେ । ସିଂହକୁ ଦେଖି ତାକୁ ମାରି ପକାଇବାକୁ ଚାରିକଡ଼ରେ ଘେରିଗଲେ । ପାଣି ତ ଖୁବ୍ ପାଖରେ ଥିଲା । ଆହତ ଜଳହସ୍ତୀ ଘୂରିଘୂରି ବହୁକଷ୍ଟରେ ଯାଇ ପାଣି ଭିତରେ ପଶିଗଲା । ତା ପଛେପଛେ ଅନ୍ୟ ସାଙ୍ଗସାଥୀ ଗୁଡ଼ିକ ଚାଲି-ଥାଆନ୍ତି ।

ସିଂହ ପିଠିରେ ବସିଥିବା ଜନ୍ତୁଟି ସଙ୍ଗେସଙ୍ଗେ ପାଣି ଭିତରେ ବୁଡ଼ିଗଲା । ତା ସହିତ ସିଂହ ମଧ୍ୟ ବୁଡ଼ିଗଲା । ମାତ୍ର ଅଳ୍ପ ସମୟ ପରେ ସିଂହ ଭାସିଉଠିଲା; ତାର କେତେକ ଦୂରରେ ଜଳହସ୍ତୀ ଦେଖାଗଲା । ଅନ୍ୟ ଜଳହସ୍ତୀଗୁଡ଼ିକ ସିଂହର ଚାରିପାଖେ ଘେରି ରହିଥାଆନ୍ତି ।

ସିଂହ ଭୂଇଁଉପରର ଜୀବ । ପାଣିଭିତରେ ତାର କସରତ ବା କେତେ ? ସେଠାରୁ ସେ ପଳାଇ ଆସିବାକୁ ବହୁତ ପ୍ରକାର ଚେଷ୍ଟା କରୁଥାଏ । ମାତ୍ର ଜଳହସ୍ତୀଗୁଡ଼ିକ ତାକୁ ଏଭଳି ଭାବରେ ଘେରି ରହିଥାନ୍ତି ଯେ, ସେଠାରୁ ସେ ଆସିପାରୁ ନ ଥାଏ ।

ଜଳହସ୍ତୀଗୁଡ଼ିକ ଚେଷ୍ଟା କରୁଥାନ୍ତି, ସିଂହକୁ କୌଣସି ମତେ ପାଣି ଭିତରେ ବୁଡ଼ାଇଦେବେ । ସିଂହ ଚେଷ୍ଟା କରୁଥାଏ, ସେ ସେଠାରୁ କପର ଶୁଖିଲାକୁ ପଳାଇ ଆସିବ । ଶିକାର ନ ହେଲା ନାହିଁ ପଛକେ, ଆଗ ଜୀବନ ରହୁ ।

ବହୁ ସମୟ ଧରି ଏ ଦୃଶ୍ୟ ଆମେ ଦେଖିବାକୁ ପାଇଲୁ । ସିଂହ ଯେଉଁ ଆଡ଼କୁ ମୁହଁ କରେ, ସେ ଦେଖେ, ପର୍ବତ ଗୁମ୍ଫା ପରି ଗୋଟାଏ ଅତି ବଡ଼ ପାଟି ଆଁ କରି ତା ଆଡ଼କୁ ବଢ଼ିଆସୁଛି; କିନ୍ତୁ ଜର୍ଭୟରେ ତା ପାଖକୁ ଆସିପାରୁ ନାହିଁ ।

କେତେକ ସମୟ ପରେ ସିଂହର ଟିକ ମୁଣ୍ଡଟାକୁ ଗୋଟାଏ ଜଳହସ୍ତୀ ପାଟିରେ ପୂରାଇ ପାଟି ବନ୍ଦ କରିଦେଲା । ସିଂହ ଛୋଟିରେ ତାର ବଡ଼ ଦାନ୍ତରୁ ଟୋଟାଏ ଗଳିଗଲା । ତଥାପି ସିଂହ ଦବ ଯାଇ ନ ଥାଏ । ସେ ଅନ୍ଧାରୁଆ ଭାବରେ ତା ପଞ୍ଜାରେ ଜଳହସ୍ତୀକୁ ଖୁମ୍ପୁଡା ମାରୁଥାଏ । ଅନ୍ୟ ଜଳହସ୍ତୀଗୁଡ଼ିକ ତା ପାଖକୁ ଆସିବାକୁ ସାହସ କରୁ ନ ଥା'ନ୍ତି; କିନ୍ତୁ ସାଙ୍ଗକୁ ସାହାଯ୍ୟ କରିବାକୁ ତାଙ୍କର ପ୍ରବଳ ଇଚ୍ଛା ଥିଲାପରି ଜଣାଯାଉଥାଏ ।

ଜଳହସ୍ତୀଟି ଆଉ ପାଟି ବନ୍ଦ କରି ବେଶି ସମୟ ରହି ପାରିଲା ନାହିଁ । ଆଁ ମେଲ୍ କରିଦେବା ସଙ୍ଗେସଙ୍ଗେ ସିଂହ ଖାଲି-ହୋଇ ଚାଲିଆସିଲା । ତା ପରେ ସେ ଆଉ ନିଜ ଜୀବନ ପ୍ରତି ମମତା ନ ରଖି ଯାହାକୁ ଆଗରେ ଦେଖିଲା, ତାକୁ କାମୁଡ଼ି ପକାଇବାକୁ ଚେଷ୍ଟାକଲା । ସେମାନଙ୍କ ଗର୍ଜନ ଓ ପାଣି ତଳ ଉପର ହେବାର ଶବ୍ଦ କାନ ବଧିର କରିପକାଉଥାଏ ।

ଶେଷରେ ସିଂହ ବହୁକଷ୍ଟରେ ପାଣିରୁ ଟିକଏ ଶୁଖିଲାକୁ ଆସିଗଲା; ମାତ୍ର ସେତେବେଳକୁ ସେ ଏକାବେଳକେ ହାଲିଆ ହୋଇ ପଡ଼ିଥାଏ । ଆଉ ବେଶି ବାଟ ଦଉଡ଼ି ଯାଇପାରିଲା ନାହିଁ । ଅଳ୍ପଦୂର ଯାଇ ତଳେ ପଡ଼ିଗଲା ଓ କିଛି ସମୟ ଧକେଇବାକୁ ଲାଗିଲା । ତା ପରେ ସବୁ ଶେଷ ।

ପରଦିନ ଆମେ ଜଳହସ୍ତୀଙ୍କର ଅବସ୍ଥା ଅନୁସନ୍ଧାନ କରିବାକୁ ବାହାରିଲୁ । ବୁଲି ଦେଖିଲୁ, ପାଣିକୂଳର କେତେକ ଦୂର ଅନ୍ତରରେ ଦୁଇଟି ଜଳହସ୍ତୀ ପଡ଼ିଛନ୍ତି । ଦୁହିଙ୍କ ଦେହରୁ ବହୁ-ପରିମାଣ ମାଂସ ଛିଡ଼ିଛି । ଗୋଟିଏ ମରିଯାଇଛି । ଅନ୍ୟଟି ପଡ଼ି-ରହି ଶୁକ୍‌ଶୁକ୍ ହେଉଛି ।

ବହୁତ ଦୂରରେ ପାଣିରେ ଗୋଟାଏ ମଲା ଜଳହସ୍ତୀ ଭାସୁଛି । ଯେତେ ଖୋଜିଲେ ମଧ୍ୟ ଆଉ ଦୁଇଟିର ସନ୍ଧାନ ପାଇଲୁ ନାହିଁ । ହୁଏତ ସେମାନେ ଜୀବନରେ ଥିବେ; ପହଁରି ପହଁରି ବହୁ ଦୂରକୁ ଚାଲିଯାଇଛନ୍ତି, ମାତ୍ର ସିଂହର କାମୁଡ଼ା ଯେପରି ଭାବରେ ପାଇଛନ୍ତି, ଆଉ ବେଶିଦିନ ଯେ ବଞ୍ଚିରହିବେ, ସେ ବିଶ୍ୱାସ ଆମର ହେଉନାହିଁ ।

—୧୦—

ଇଂଲଣ୍ଡର ଚିଡ଼ିଆଖାନା ଦେଖିବାକୁ ଦଳେ ଛୋଟ ପିଲା ଯାଇଥାଆନ୍ତି । ସେମାନେ ବୁଲିବୁଲି ଜଳହସ୍ତୀ ରହୁଥିବା ସ୍ଥାନରେ ଆସି ପହଞ୍ଚିଲେ । ଘରପାଖରେ ଉଚ୍ଚ ପାଚେରି । ଭିତରେ ବଡ଼ ପୋଖରି ଓ ପୋଖରି ହୁଡ଼ା । ଜଳହସ୍ତୀ ତା ଭିତରେ ବନ୍ଦୀ-ହୋଇ ରହିଥାଏ । ସେ କେତେବେଳେ ପୋଖରିରେ ପଶି ପହଁରୁଥାଏ, କେତେବେଳେ ଶୁଖିଲାରେ ବୁଲୁଥାଏ ।

ଉପରେ ରହି ପିଲାଗୁଡ଼ିକ ତା କୌତୁକ ଦେଖୁଥାଆନ୍ତି । ଜଳହସ୍ତୀ ମଧ୍ୟ ବୋଧହୁଏ ମଣିଷପିଲାଙ୍କ କୌତୁକ ଦେଖିବା ପାଇଁ ଉପରକୁ ଚାହିଁଲା । ତାହାର ପାଟିର ଆକାର ଦେଖି ଗୋଟିଏ ଛୋଟ ପିଲା ଡରିଗଲା । ସେ ଟିକିଏ ଚମକି ଉଠିଲାକ୍ଷଣି ତା ମୁଣ୍ଡରୁ ଗୋଲଟୋପିଟି ଖସିପଡ଼ିଲା । ତାହା ତଳେ କି ପାଣିରେ ହେଲେ ପଡ଼ିଥାନ୍ତା ! ଲକ୍ଷ୍ୟ କଲାପରି ଠିକ୍ ଯାଇ ଜଳହସ୍ତୀ ପାଟି ଭିତରେ ପଡ଼ିଗଲା । ଜଳହସ୍ତୀଟି ଗୋଟାଏ କିଛି ଭଲ ଖାଦ୍ୟଦ୍ରବ୍ୟ ଭାବି ପାଟି ବନ୍ଦ କରିଦେଲା ଓ ସଙ୍ଗେସଙ୍ଗେ ଟୋପିଟିକୁ ଗିଳିଦେଲା ।

ଏହା ଦେଖି ଅନ୍ୟ ପିଲାମାନେ ନାଚିଉଠିଲେ । ସେମାନେ ନିଜ ମୁଣ୍ଡରୁ ଟୋପି ବାହାର କରି ତା ଉପରକୁ ପକାଇଲେ । ସେଥିରୁ ତିନୋଟି ତା ପାଟି ଭିତରେ ପଡ଼ିଲା ଓ ପେଟ ଭିତରକୁ

ଗୁଳିଗଲା । ବାକି ଗୁଳିଗୋଟି ପାଣିରେ ପଡ଼ି ଭାସୁଥାଏ । ଜଳହସ୍ତୀଟି ବୋଧହୁଏ ସେସବୁ ଗିଳି ଦେଇଥାନ୍ତା; ମାତ୍ର ଏହି ସମୟରେ ତାର ରକ୍ଷକ ଆସି ସେଠାରେ ପହଞ୍ଚିଗଲା । ସେ ଲମ୍ବା ଲାଗି ବଢ଼ାଇ ଟୋପିଗୁଡ଼ିକ ପାଣିରୁ ଉଠାଇନେଲା । ପିଲାଙ୍କଠାରୁ ଶୁଣିଲା ଯେ, ଜଳହସ୍ତୀଟି ଗୁରୁଟା ଟୋପି ଗିଳିସାରିଛି ।

ତା ପରେ ତାକୁ ଡାକ୍ତରଖାନାକୁ ନିଆଗଲା । ତାର ଚିକିତ୍ସା କରାଗଲା । ଏଭଳି ଔଷଧ ଦିଆଗଲା,ଯେଉଁଥିରେ କି ଟୋପି ପଚି-ଯାଇ ଝାଡ଼ାରୂପେ ବାହାରିଯିବ । ପନ୍ଦରଦିନ ଯାଏ ଜଳହସ୍ତୀର ଏ ଚିକିତ୍ସା ଚାଲିଥିଲା ଓ ସେଥିରେ ଚିଡ଼ିଆଖାନାର କେତେ ଶହ ପାଉଣ୍ଡ ଖର୍ଚ୍ଚ ହୋଇଥିଲା ।

———

ମୁଦ୍ରାକର—ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର, ପ୍ରସାଦ ପ୍ରେସ,କଟକ—୨
୧୯୬୭